

# ଅଗ୍ନିଶଙ୍ଖ

କୃଷ୍ଣଚନ୍ଦ୍ର ତ୍ରିପାଠୀ

ପ୍ରକାଶକ:
କବି କୁଟୀର
ଲକ୍ଷ୍ମୀପୁର, ବାଣପୁର,
ପୁରୀ

ପ୍ରଥମ ପ୍ରକାଶ—ମାର୍ଚ୍ଚ ୧୯୫୭
ଏକ ହଜାର
ଦଶଅଣା

ସୋଲ ଏଜେଣ୍ଟ:
ଜନ-ସାହିତ୍ୟ ପ୍ରକାଶନ
ଗଙ୍ଗାମନ୍ଦିର, କଟକ—୧

ମୁଦ୍ରକ:
ପ୍ରଦ୍ୟୁମ୍ନକିଶୋର ଦାସ
କୃଷକ ପ୍ରେସ
କଟକ—୧

ଯାହାର ପଦେ ଦି'ପଦ ଉତ୍ସାହବାଣୀ
ମୋ ଦରିଦ୍ର କବି ଜୀବନର ବହୁ ଉତ୍‌ଥାନ
ପତନ ଭିତରେ ମତେ ସାଧନାର
ପଥରେ ଆଗେଇ ନେଇଛି
ବୋଲି, ମୋର ବିଶ୍ୱାସ ହୁଏ
ସେହି—

ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ

ଶ୍ରଦ୍ଧାସ୍ପଦେଷୁ

ବାଣପୁର
୧-୧-୫୬

କୃଷ୍ଣଚନ୍ଦ୍ର ତ୍ରିପାଠୀ

# ସୂଚନା

ସୁନ୍ଦର ଓ ମହତ୍ତ୍ୱର ପୂଜା ଯେତେବେଳେ ବ୍ୟର୍ଥତାରେ ପର୍ଯ୍ୟବସିତ, ଶିଳ୍ପ ଓ ସାହିତ୍ୟର ସୌନ୍ଦର୍ଯ୍ୟ ଯେତେବେଳେ ଅବମାନିତ, ସଭ୍ୟତା ଓ ସଂସ୍କୃତି ମଣିଷର ଦୁର୍ଗତିମୋଚନ ଲାଗି ଯେତେବେଳେ ବ୍ୟର୍ଥ, ଯେତେବେଳେ ସମାଜ ଜୀବନରେ ଅନିବାର୍ଯ୍ୟରୂପେ ଆସେ ଘୂର୍ଣ୍ଣାବର୍ତ୍ତ । କାବ୍ୟ, ଶିଳ୍ପ ଏବଂ ସମାଜବାଦୀ ଦାର୍ଶନିକ ଚିନ୍ତାରେ ପ୍ରଗତିବାଦର ଯୁଗ ଆରମ୍ଭ ହେଲା ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ । ଏହି ପ୍ରଗତିବାଦର ପଶ୍ଚାତରେ ରହିଛି ମର୍ମତଳର ଆଗ୍ନେୟ ବିସ୍ଫୋରଣ, ବିରାଟ ବିପ୍ଳବ । ଅର୍ଥନୀତିକ-ବୈଷମ୍ୟ, ଶୋଷଣ, ଅତ୍ୟାଚାର, ଘୋର ଦାରିଦ୍ର୍ୟ, ଭିକ୍ଷୁକର ଆର୍ତ୍ତନାଦ ଦାସତ୍ୱର ଆବର୍ଜ୍ଜନା ଭିତରୁ ବିଦ୍ରୋହ ଓ ଆନ୍ଦୋଳନ ସ୍ୱତଃସ୍ଫୂର୍ତ୍ତ ହୋଇ ଉଠେ । ଅବିରାମ ଇତିହାସର ଚକ୍ର ଘୂରେ । କିଛୁଯୁଗର ଅବସାନ ଘଟେ । କେଉଁଠି ହିଟଲର ଭଳି ଫାସିଷ୍ଟନେତା ଜନସାଧାରଣଙ୍କୁ ହିଂସାର ଖଡ୍ଗ ଧରାଇ ଶତ୍ରୁକୁ ହତ୍ୟା କରୁ କରୁ ଶେଷରେ ମାନବିକତାକୁ ହତ୍ୟା କରିବସେ; କେଉଁଠି ବା ଶାନ୍ତି ଅହିଂସାର ମନ୍ତ୍ରରେ ମୃତଆତ୍ମା ସଞ୍ଜୀବିତ ହୋଇଉଠେ ଏବଂ ମାନବିକତା ରକ୍ଷାପାଏ । ଯୁଗ ପ୍ରବର୍ତ୍ତକ, ମହା-ପୁରୁଷର ମହାଦାନ ସହିତ ସେବକ, କର୍ମୀ, କବି ଓ ସାହିତ୍ୟିକ ପରସ୍ପରର ସହଯୋଗରେ ଏକ ନୂତନ ଯୁଗର ସନ୍ଧାନରେ ଅଗ୍ରସର ହୁଅନ୍ତି । ଏହି ନୂତନ ଯୁଗର ସନ୍ଧାନୀ କବିର ପ୍ରାଣରେ ବିଦ୍ରୋହର ବାତ୍ୟା ପ୍ରବାହିତ ହେବା ସଙ୍ଗେ ଦରିଦ୍ରପ୍ରତି ସମବେଦନା, ସ୍ୱାଧୀନତା

ପ୍ରତି ବ୍ୟାକୁଳତା ଜାଗ୍ରତ ହୋଇଥାଏ । ଏହି ସମବେଦନା ଓ ବ୍ୟାକୁଳତାର ଧାରା ଅତି ପ୍ରଖର, ସ୍ୱଚ୍ଛ ଏବଂ ଉଦାମ । କୌଣସି ତନ୍ତ୍ରରେ ତାର ଚିନ୍ତାଧାରା ଅବରୁଦ୍ଧ ହୋଇ ଯାଇ ନ ପାରେ, କୌଣସି ସ୍ୱଜନୀତ କପଟତାର ଶିକାର ହୋଇ ସେ ପକ୍ଷପାତୀ ହୋଇ ନ ଥାଏ । ମୁକ୍ତ ବିହଙ୍ଗପରି କବିର ଭାବଧାରା ଶୂନ୍ୟ ସୁନୀଳ ଆକାଶରେ ଗତି କରିଥାଏ । ନିଜର ଜୀବନକୁ ଭୁଲିଯାଇ ସେ ସାମାଜିକ ଜୀବନର ସୁଖସ୍ୱାଚ୍ଛନ୍ଦ୍ୟ କଥା ଭାବେ । ସମାଜର ସୌନ୍ଦର୍ଯ୍ୟ, ଆର୍ଥିକ ସ୍ୱଚ୍ଛଳତା ଲାଗି ସେ କଲମ ଧାରରେ ଆନ୍ଦୋଳନ କରେ ।

ପ୍ରଥମ ଓ ଦ୍ୱିତୀୟ ମହାଯୁଦ୍ଧ ପରେ ଶିଳ୍ପ ଓ ବିଜ୍ଞାନର ସମୁଚ୍ଚ ବିକାଶ ସଙ୍ଗେ ସଙ୍ଗେ ମାନବ ସମାଜ ଉପରେ ଅପଘାତ ମୃତ୍ୟୁର ଆଘାତ ଲାଗିଛି । ଅବସାଦ, କ୍ଳାନ୍ତି ଓ ନୈରାଶ୍ୟହିଁ ହୋଇଛି ଏହି ବିକାଶର ଉପହାର । ପ୍ରତିପଦରେ ନିରର୍ଥକ ହିଂସା ଓ ଶୋଷଣର ନିର୍ମମ ଆଘାତ ସମାଜକୁ ଶ୍ମଶାନ କରି ଯାଇଛି । ପ୍ରେତର ଲୋଭ ଓ ଆଶଙ୍କାର ଉତ୍ସବମଞ୍ଚ ହୋଇଛି ସମାଜ । ପ୍ରଥମ ମହାଯୁଦ୍ଧପରେ ନିଷ୍ପାଦପ ପ୍ରାନ୍ତରକୁ ଦେଖି କବି ଏଲଏଟ ଗାଇଗଲେ—

The eyes are not here
There are no eyes here
In this Valley of dying stars
in this hollow valley
This broken Jaw of our lost
Kingdoms

ଏହି ଶୁଷ୍କ ପ୍ରାନ୍ତରହିଁ ମାନବ ସମାଜର ବର୍ତ୍ତମାନ ରୂପ । ମଣିଷ ଭିତରର ମହତ୍ତ୍ୱ ଟିକକ କ୍ରମଶଃ ମଳିନ, ଶୁଷ୍କ ହେବାକୁ ବସୁଛି । ଟଲଷ୍ଟୟ, ଗର୍କି, ରବୀନ୍ଦ୍ରନାଥ, ଶରତ୍‌ଚନ୍ଦ୍ର ଓ ଶେଷରେ ଏହି ବର୍ଷର ନୋବେଲ ପ୍ରାଇଜ ପୁରସ୍କୃତ ଔପନ୍ୟାସିକ ଲକ୍‌ସନେସ ଏହି ଜୀବନର ମହତ୍ତ୍ୱକୁ, ଦାରିଦ୍ର୍ୟର ଉପାଦାନକୁ ଉପଲବ୍ଧି କରିଛନ୍ତି । ଅସମାନତାର ଲୋପସାଧନଲାଗି ଚେଷ୍ଟା କରିଛନ୍ତି ।

ଲକ୍‌ସନେସ୍‌ଙ୍କ "ସାଲ୍‌କାଭଲ୍‌କା" ବହିର ନାୟିକା ଗରିବ କିଶୋରୀ ସାଲ୍‌କା ବ୍ୟାକୁଳ ହୋଇ ଈଶ୍ୱରଙ୍କୁ ପ୍ରଶ୍ନ କରିଛି— "ସମସ୍ତଙ୍କୁ ତ ତୁମେ ସୃଷ୍ଟି କରିଚ ତେବେ ସମସ୍ତେ ଦେଖିବାକୁ ସୁନ୍ଦର ନୁହଁନ୍ତି କାହିଁକି ? ସମସ୍ତଙ୍କ ପାଇଁ ଭଲ କରି ମୁଠେ ଖାଇବାକୁ ମିଳେନା କାହିଁକି ?"

ରୁଷର ଟଲଷ୍ଟୟ, ଆଇସଲାଣ୍ଡର ଲିଁକ୍‌ସନେସ, ଭାରତର ଶରତଚନ୍ଦ୍ର ସହିତ ସ୍ୱରମିଳାଇ କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କର ମଧ୍ୟ ସେଇ ଏକ ପ୍ରଶ୍ନ—ସମାଜରେ ଏତେ ଅସମାନତା କାହିଁକି ? ଶୋଷଣ ଅତ୍ୟାଚାର କାହିଁକି ? ସ୍ୱାଧୀନତା ପାଇଲେ ମଣିଷ କେତେ ସୁନ୍ଦର ନ ହୁଅନ୍ତା ! "ଅଗ୍ନିଶଙ୍ଖ"ର ପ୍ରତି ବାକ୍ୟରେ ଏହି ବିଦ୍ରୋହାତ୍ମକ, ବୈପ୍ଳବିକ ଆତ୍ମକଳ୍ପନା । ସମାଜର ଯେତେକ ଠକ ଜୁଆଚୋର, ପ୍ରବଞ୍ଚକ, ଯେଉଁମାନେ ଆତ୍ମ-ସ୍ୱାର୍ଥଲାଗି ସମାଜକୁ ଟିକନଖି କରି ଆତ୍ମସାତ୍ କରି ନିଜକୁ ବିଷାକ୍ତ, କଳଙ୍କିତ କରିବାକୁ ଅଗ୍ରସର ସେମାନଙ୍କୁ କବି କୃଷ୍ଣଚନ୍ଦ୍ର ତ୍ରିପାଠୀ ଏହି ସତର୍କ ବାଣୀ ଶୁଣାଇଛନ୍ତି—

ତୁମରି ଭିତରେ ତୁମେ ନାହଁ
ତୁମେ ଅଛ ଛଳନାର ବିଷାକ୍ତ ଦେହରେ

ଏକ ଭୟଙ୍କର ସତ୍ୟ ପ୍ରାପ୍ତ
ନିଜକୁ ଜାଣିନ ତମେ
ଜାଣିବାକୁ ଦେଇନାହଁ ବାରେ ଅବକାଶ
କେମନ୍ତେ ଜାଣିବ ତୁମେ
ମଣିଷର ସକଳ ସଂପଦ
ତୁମଠାରୁ ହୋଇଚି ନିକାଶ ।

ସ୍ୱାର୍ଥାନ୍ଧ ମଣିଷ ନିଜର ଦୁଷ୍କୀର୍ତ୍ତିକୁ ବୁଝି ପାରେନା । ସେ ନିଜସ୍ୱ ହରାଇ ବସେ ।

ମଣିଷହିଁ ପୃଥିବୀର ସର୍ବଶ୍ରେଷ୍ଠ ଶିଳ୍ପ । କିନ୍ତୁ ସେ ନିଜେହିଁ ସେହି ଶିଳ୍ପକୁ ଜ୍ଞାତ ବା ଅଜ୍ଞାତସାରରେ ନଷ୍ଟ କରିଥାଏ । ଅପରର ମୃତ୍ୟୁ ହେଉ – ମୁଁ କିନ୍ତୁ ଅମୃତ ହୋଇ ରହିଥିବ ଏଇ ଦୁର୍ବାର ଭ୍ରାନ୍ତ ଲାଳସାରେ ପଡ଼ି ଅନେକ ନିଷ୍ଠୁର କାମ କରିଯାଆନ୍ତି । ମଣିଷକୁ ମଣିଷ ଭୁଲିଯାଏ । ଯେ ଭୁଲିଯାଏ ତା ପାଇଁ କବି କହିଛନ୍ତି:—

ଜାଣ ତମେ ଜାଣ ?
ମଣିଷ ଏ ପୃଥିବୀର ସମସ୍ତ କ୍ଷମତା
ମଣିଷ ଏ ପୃଥିବୀର ଏକମାତ୍ର ଧନ
ମଣିଷ ଏ ପୃଥିବୀର ଏକାନ୍ତ ଗୌରବ—
ମଣିଷରେ ଦୂରେ ଦୂରେ ବହୁଦୂରେ
ଫିଙ୍ଗିଦେଲେ ତମେ
ଏ ଜୀବନ କେତେ ନିଃସ୍ୱ କେତେ ପ୍ରାଣହୀନ ?

ମୁକ୍ତିର ମହିମାଗାନହିଁ "ଅଗ୍ନିଶଙ୍ଖ"ର ଆତ୍ମା । ଉନ୍ମୁକ୍ତ ପୃଥିବୀରେ ଦ୍ୱାରବନ୍ଦ କରି ମଣିଷକୁ ବନ୍ଦୀ କରିହେବ ନ ପାରେ ।

"ମୋର ଏଇ ରକ୍ତ ମାଂସ ହାଡ଼
ଭିତରୁ ଛୁଟିଛି ଆଜ
ଝଡ଼ର ହୁଙ୍କାର ।
ପାଗଳ ମୁଁ ଅଥୟ ଚଞ୍ଚଳ
ନୁହେଁ ଆଜ
ନିଜେ ମୁଁ ନିଜର ।

ପୁଣି ପରାଧୀନତାକୁ ଧିକ୍କାର କରି—

କେ ଗୃହେଁରେ
କା' ଦୁଆରେ
ଚିରଦିନ ହେବାକୁ ଗୋଲାମ ?
ଯାଜଣୁ ଆସୁଣୁ ନିତ
କରିବାକୁ ପ୍ରାଣହୀନ
ସହସ୍ର ସଲାମ ।

ଶେଷରେ—

ଦାସତ୍ୱ ଭିତରେ କାହିଁ
ଜୀବନର ମୋହନ ବିକାଶ ?

ଓଡ଼ିଆରେ କାବ୍ୟ କବିତାର ଅଭାବ ନାହିଁ ସତ; କିନ୍ତୁ କବିତାରେ ବାସ୍ତବ ଧର୍ମକୁ ରୂପାୟିତ କରି ଭାବକୁ ପ୍ରାଞ୍ଜଳ ଭାବରେ ଫୁଟାଇବା ଭଳି ଶକ୍ତି କମ୍ କବିଙ୍କଠାରେ ରହିଛି । ସଚ୍ଚିରାଉତରାୟଙ୍କ "ବାଜିରାଉତ" ଓ ଅନନ୍ତ ପଟ୍ଟନାୟକଙ୍କ "ଶାନ୍ତି ଶିଖା"କୁ ଛାଡ଼ିଦେଲେ ଅନ୍ୟ ପ୍ରାୟ ସବୁ କାବ୍ୟ କବିତାରେ ସମାଜରେ ଅର୍ଥନୀତିକ ବୈଷମ୍ୟରୁ ଉଦ୍ଭୂତ ଦାରିଦ୍ର୍ୟ, ଶୋଷଣ ଏବଂ ଅତ୍ୟାଚାରର ଚିତ୍ର କମ୍ ଦେଖାଯାଏ । ଯୌନଶୃଙ୍ଗାର

ଭାବକୁହିଁ ଆଶ୍ରୟ କରି ଏକ ସହଜ-ପନ୍ଥାରେ ସମସ୍ତେ ଅଯଥା ପ୍ରଶଂସା ପାଇବା ଲାଗି ଦାବୀ କରି ବସିଥାନ୍ତି । ସମାଜର ସୂକ୍ଷ୍ମ ଅଭାବଗ୍ରସ୍ତ, ପୀଡ଼ିତ ଅଙ୍ଗକୁ ସ୍ପର୍ଶ କରି ତାକୁ ସୁସ୍ଥ ସବଳ କରିବା ଦିଗରେ ଅନେକଙ୍କ ଉଦାସୀନତା ଦେଖା ଦେଇଛି ।

"ଅଗ୍ନିଶଙ୍ଖ" ଓଡ଼ିଆ ସାହିତ୍ୟରେ ଏକ ଗଳ୍ପସମ୍ପନ୍ନ କାବ୍ୟ ନହେଲେ ମଧ୍ୟ ଏକ ଭାବମୟ ବୈପ୍ଳବିକ ଖଣ୍ଡ କିନ୍ତୁ ଅକ୍ଷତ କାବ୍ୟ । ଆଧୁନିକ କବିତାର ଦୁର୍ବୋଧତା ଏଥିରେ ସମ୍ପୂର୍ଣ୍ଣଭାବେ ଅନୁପସ୍ଥିତ, ସ୍ୱଜାତିର ଖାଦ୍ୟ୍ୟକ ଦୃଷ୍ଟି ନାହିଁ । "ଅଗ୍ନିଶଙ୍ଖ"ର ସବୁଠାରୁ ବଡ଼ ବିଶେଷତ୍ୱ ହେଉଛି, ଏଥିରେ କୌଣସି ଚେଷ୍ଟାକୃତ ଭାବ ବା ଛନ୍ଦବନ୍ଧନର ଦୁର୍ବଳତା ନାହିଁ; ପରନ୍ତୁ ସହଜ, ସରଳ ଓ ଆତ୍ମସ୍ଫୂର୍ତ୍ତି ହୋଇଥିବାରୁ ଏହା ସହଜେ ପାଠକମନକୁ ଆକୃଷ୍ଟ କରି ଦେଇପାରେ ।

କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ଜଣେ ପରମ ଗୁଣମୁଗ୍ଧ ଶୁଭେଚ୍ଛୁବରେ ମୁଁ ଅନେକ ସମୟରେ ତାଙ୍କର କବିତା ପଂକ୍ତିର ଆସ୍ୱାଦନରେ ବିଭୋର ହୋଇ ଉଠେ, କିନ୍ତୁ ତ୍ରୁଟି ଦେଖିଲେ ସମାଲୋଚନା କରିବା ପାଇଁ କେବେହେଲେ ପଶ୍ଚାତପଦ ହୁଏନା ।

ସେ ଜୀବନରେ ସହସ୍ରାଧିକ କବିତା ଲେଖିଛନ୍ତି କହିଲେ ମଧ୍ୟ ସଠିକ ହେବ ବୋଲି ମୋର ମନେହୁଏନା । ଓଡ଼ିଶାର ପ୍ରାୟ ଶ୍ରେଷ୍ଠ ବଡ଼ ସମସ୍ତ ମୁଦ୍ରିତ ଓ ଅମୁଦ୍ରିତ ପତ୍ରିକାରେ ତାଙ୍କର ଲେଖା ପ୍ରକାଶ ପାଇ ଆସୁଛି । ଅନେକ ସମୟରେ ମୁଁ ତାଙ୍କୁ ପତ୍ର ଲେଖି ଜଣାଏ "ଆପଣ ଏଠି ସେଠି କବିତା ଦେଇ ନିଜକୁ ଶସ୍ତା ବୋଲି ଉପଲବ୍ଧି କରୁ ନାହାଁନ୍ତି ?"

"କଦାପି ନୁହେଁ" ଉତ୍ତର ମିଳେ । ବରଂ "ମୋର କବିତା ଆହୁରି ସ୍ପଷ୍ଟ ହେଉ ଯାହା ଫଳରେ ଜନସାଧାରଣ ଅତି ସହଜରେ ମୋ କବିତାକୁ ଜାଣିପାରିବେ, ଏହାହିଁ ମୋର ଇଚ୍ଛା ।"

ଦରିଦ୍ରଙ୍କ ପ୍ରତି ଶ୍ରଦ୍ଧା ଓ ସହାନୁଭୂତି ତାଙ୍କର ରହିଛି ବୋଲି ସେ କାହାରି ସମାଲୋଚନାରେ ଅବନତ ନ ହୋଇ ପଡ଼ି ନିଜର ଝଙ୍କାପୃ ଶରୀରର ଦୁଇ ପାଦ ଉପରେ ପୃଥିବୀ ବକ୍ଷରେ ନିର୍ଭୀକ ଭାବରେ ମାଡ଼ି ଚାଲିଛନ୍ତି । ମାଟି ପ୍ରତି ତାଙ୍କର ସମ୍ମାନ ଅସୀମ । ସେଥିପାଇଁ······

ମୋ ଆନନ୍ଦ ମୋ ଜୀବନ
ମୋହର ସହସ୍ର ସ୍ୱପ୍ନ
ସବୁ ଆଶା ସବୁ ଅଭିଳାଷ
ଏଇମାଟି ଏଇ ଦେଶ
ଏଇ ମୋର ବିରାଟ ଜନତା
—ଏ ସବୁରେ ନିର୍ମମ ପିଶାଚ ପରି
ପଦଦଳେ ଦଳି
କେମନ୍ତେ ଚାଲିବି କହ
କେଉଁଆଡ଼େ କି ସମ୍ପଦ ଧରି ?

କବିଙ୍କ କବିତା ସମ୍ଭାରରେ ବିଶ୍ୱ-ସାହିତ୍ୟ ବିମଣ୍ଡିତ ହେଉ; ଉତ୍କଳ ସାହିତ୍ୟ ଉପକୃତ ହେଉ ଏହାହିଁ କାମନା ।

କଟକ
୧୮।୧।୫୭

ଗୋପୀଚନ୍ଦ୍ର ମିଶ୍ର

ପ୍ରଳୟର ମହା ଅଗ୍ନି ଭେଦି
ପୃଥ୍ୱୀରେ କରିବାକୁ
ପ୍ରାଣର ସଂଚାର
ଉଠିଛି ମୁଁ, ଆସିଛି ମୁଁ,
ଆସି ନାଇଁ
ଦାସତ୍ୱ ଶୃଙ୍ଖଳେ କାହିଁ
ବନ୍ଧାରହି,
କରିବାକୁ
ଅନୁଗ୍ରହ ଭିକ୍ଷା କା'ର
ପଥଚାରୀ
ନିରନ୍ନ କୁକ୍କୁର ପରି
ଲାଙ୍ଗୁଳ ହଲାଇ ! ! !

—କୃଷ୍ଣଚନ୍ଦ୍ର ତ୍ରିପାଠୀ

# ଅଗ୍ନିଶଙ୍ଖ

—ଏକ—

ହୃଦୟ କବାଟ ଖୋଲି
ମଣିଷ ଯେଉଁଠି ହାସ୍ୟ !
ମଣିଷକୁ ଦିଏ ନାହିଁ
ସେନେହ ସମ୍ଭାର,
ମଣିଷ ଉପରେ ଯହିଁ
ମଣିଷ କରଇ ନିତି
ଘୋର ଅତ୍ୟାଚାର,
ଯେଉଁଠାରେ ମଣିଷକୁ
ଏ ମଣିଷ ଘୃଣାକରେ
ଅବଜ୍ଞାର ଦୃଷ୍ଟି ଢାଳି
ଚାହେଁ ବାର ବାର,
ସେ ମାଟିକି ମଣିଷର ମାଟି !

ପୃଥିବୀକୁ ଗ୍ରାସିବାକୁ
ଲେଲିହାନ ଜିହ୍ୱାମେଲି
ଯେଉଁଠି ମଣିଷ କରେ
ଶତ ଷଡ଼ଯନ୍ତ୍ର,
ହତ୍ୟାରେ ଆନନ୍ଦ ଯହିଁ
ଦେଖଇ ମଣିଷ
ଖେଳ ବୋମା
ବନ୍ଧୁକ କମାଣ,
ମଣିଷ ଯେଉଁଠି ଖେଳେ
ଆଟୋପ ସମ୍ଭାରେ,
ଆତଙ୍କର ଗୁମ୍ଫା ଯହିଁ
ଯେଉ ରକ୍ତଥାଏ ଖୁରଅଗ୍ରେ
ସେ ମାଟିକି ମଣିଷର ମାଟି ?

ଜଣେ ଯହିଁ ଖାଏ ବସି
ମନ ବୋଧ କରି,
ଅନ୍ୟ ଜଣେ ରହିଥାଏ ଭୁଖି;
ସିଟିଲ ସଜ୍ଜଧେ ଯହିଁ
ଜଣେ ରହେ ବିଦ୍ୟୁତ ଆଲୋକେ
ଆମୋଦ ପ୍ରମୋଦ ଆଉ
ସଙ୍ଗୀତର ରଙ୍ଗିନ୍ ଜହ୍ନରେ,
ଆନ ଜଣେ
କପାଳ ଆଦରି
ଭଙ୍ଗା କୁଡ଼ିଆରେ ଛାଇ

ଉଡୁଥାଏ
ଶୀତ ଖରା ବର୍ଷା ସବୁ
ବର୍ଷ ବର୍ଷ ଧରି,
କପର ରକ୍ତଚୂ କୋଲ
ତାରେ କେହୁ ପରୁରେନ
ନମିଷକ ପାଇଁ,
ବରଂ ତା'ର
ଉମ୍ଭ୍ରଖେ ମଣିଷ
ବକ୍ଷ ଟେକ ଗୁଲୁଥାଏ
ଆପଣାର ଗୌରବ ଦେଖାଇ
ସେମାଟିକ ମଣିଷର ମାଟି !

ବେଦନା ଅଭାବ ଦୁଃଖ
ମଣିଷର ବୁକୁତଳେ
ଯେବେ ବନ୍ଧ ବାନ୍ଧୁ ଯାଏ
ପ୍ରଳୟର ଝଡ଼ ପରି
ଦନ ଦାନ ଧରି,
ରକ୍ତ ଯେବେ ଲଗେ ତା'ରେ
ମହା ବସୁନ୍ଧରା,
ପ୍ରାଣ ଖେଳ
ଜାହାକୁ କହିବ ତା'ର
ଅନ୍ତର ଦହନ ?
ଗେ ଉଦ୍ଧଙ୍କ ଠିଆହୁଏ
ଲବେ ଆଶା ଆଶ୍ରା ପାଇବାକୁ

କାହା ଦ୍ୱାରେ ଯାଉ,
ସେଠି ଯେବେ ଶୁଣେ ସେଥୁ
କଟୁ ତିକ୍ତ ବାଣୀ,
ମହା ବସୁନ୍ଧରା ପରେ—
ଅଛି ତା'ର ଅନୁଭୂତି
ଅଛି ତା'ର ଜୀବନର ମାନ
ଅଛି ତା'ର ଦାବୀ ଅଧିକାର
ମଣିଷଠୁ ପାଇବାକୁ
ମଣିଷର ମଧୁବୋଲା—
ପୁଣ୍ୟ ବ୍ୟବହାର,
ତା'ରେ ଯଦି
ଧରଣୀ ଧୂଳିର
କ୍ଷୁଦ୍ର ପୋକ ମାଛି ପରି
ଦୂରେ ଦୂରେ
ଦଅ ତୁମ୍ଭେ ଚଢ଼ି,
ଯେ ମାଟି ଉପରେ ଗୁଳେ
ଏଇ ଶତ ନଦାରୁଣ ଲୀଳା
ସେ ମାଟିକି ମଣିଷର ମ ଟି !

## — ଦୁଇ —

ଏ ମାଟି ଉପରେ ତାର ହାଇରେ ଟିକଏ ହେଲେ
ଆସନ ତ ନାହିଁ !
ସିଏ କଣ ଆସିନ ଏ ଧରଣୀର ଅମୃତ ସମ୍ପଦୁ
କଣିକାଏ ଭୁଞ୍ଜିବାର ପାଇଁ ?
ଯେତେ ଯେ ବସିଚ ଏଥି ଗୃହଁ ତାରେ ଗୃହଁ !
ଓଠ ତାର ମଳନ ବଶୁଷ୍କ
ବୃକ୍ଷର ଯୌବନ କ୍ଷାଣ ଦଂଷ୍ଟ୍ର ପୁଷ୍ଟ ପଶ—
ହତଶିଶୁ ଦଶେନକ ହାସ୍ୟ !
ଖାଇ ନାହିଁ ! ଖାଇ ନାହିଁ !
ପେଟ ତାର ଯାଇ ଅଛି ଲାଗି,
ପୃଥିବୀର ସମସ୍ତ ଅନ୍ତର
କଶତ କ ସୀମାହୀନ ଅବହେଳା ତାରେ ?
କାହାକୁ ସେ ଓଠ ଫେଇ
କହୁ ହେଲେ ପାରୁନାହିଁ ମାଗି ! ! !

ହସିବ ସେ, ଖେଳିବ ସେ
ପ୍ରାଣେର ଅମୃତ ଶୋହା ଢାଳିବ ସେ
ଏ ଧରଣୀ ପରେ,
ଆସିନ ଆସିନ ସିଏ
ଜୀବନ୍ତ ସମାଧି ଲଭି
ନଭି ଯିବ ବୋଲି କେଉଁ —
ଅତଳ ସାଗରେ ! !

ସମସ୍ତ ଅଭାବ ସବୁ ଉତ୍ପୀଡ଼ନ —
ତୁମେହିଁ ଦେଇଚ ତାରେ
ତାର ପ୍ରତି ମାଂସ ଖଣ୍ଡ ପ୍ରଳୟଗର୍ଜ୍ଜନ କରି—
କହେ ଯେଉଁ ସେଇ କଥା ସୃଷ୍ଟି ଗୁରୁଆଡ଼େ !

ମୁହିଁ ଚାହେଁ ଦେଖିବାକୁ
ଅଙ୍ଗେ ଅଙ୍ଗେ ତାର
ଲାବଣ୍ୟର ସୀମାହୀନ ତେଜ,
ଚାହେଁ ମୁହିଁ ଦେଖିବାକୁ
ତାର ଚୂର୍ଣ୍ଣ ପ୍ରସ୍ତରର ବଜ୍ର ବିକାଶ
ଚାହେଁ ମୁହିଁ ଦେଖିବାକୁ
ତାର ସେଇ ଅମୃତ ପ୍ରାଣର ଅଦ୍ଭୁତ ପ୍ରକାଶ !
ମସ୍ତିଷ ଭିତରେ କମ୍ପିତ ଯେ ମସ୍ତିଷ ଚିକ୍କଣ
ତାକୁ ଯେବେ ମୁହୂର୍ତ୍ତେ ମୁଷ୍ଟିରେ ଧରି
ଦେବ ତୁମେ ଦଳି
ପୃଥିବୀର ରନ୍ଧ୍ରେ ରନ୍ଧ୍ରେ ଅମୃତର ସାଣାତାନ
ଉଠେବ କି ମଧୁ ମନ୍ତ୍ରେ ଝରି ! ?

— ତିନି —

ଯେଉଁଠାରେ ରହିଅଛି
ଅଗଣନ ଟଙ୍କା ଓ ପଇସା;
ଯେଉଁଠାରେ ନଭସ୍ପର୍ଶୀ କୋଠାବାଡ଼ି—
ରହିଅଛି, ସୀମାହୀନ ଅହଙ୍କାର ଧରି !

ଯେଉଁଠାରେ ଅସମ୍ଭବ ଉଚ୍ଚାଭିଳାଷ
ଧାପ୍ତ ହବାଲେକେ ! !
ଯେଉଁଠାରେ ସମ୍ଭ୍ରାନ୍ତ, ଜାଲ, ଜଳାଶ୍ରୟେ
ପରକିତ ଚଢ଼ାନ୍ତ କଳ୍ପନା !
ଯେଉଁଠାରେ ଔଦ୍ଧତ୍ୟ ଓ ଅହମିକା—
ଆଜୀବନ ରହିଅଛି,
ଛାଡ଼ିବାକୁ ଶତଧନ କୁଣ୍ଠିତ କାତର—
ସିଏ ପୁଣି ସୌଭାଗ୍ୟର ଲୀଳାସ୍ଥଳୀ
ସିଏ ପୁଣି କାମ୍ୟ ଜଗତର ! ! !

ଯେଉଁଠାରେ ଜୀବନର –
ସୀମାହୀନ ଆପଦେ ବିପଦେ
ଦରିଦ୍ର କୁଟୀରୁ ଆସି
କଏ କେତେ ଉପାଶରେ
ହୋଇଯାଏ ସାହା,
ନୟନୁ ବୋହିଲେ ଲୁହ *
କାହାର ଅନ୍ତର
ସେ ଯେ କେଉଁ ପଙ୍କ-କୁଢ଼ଆରୁ
କହିଯାଏ ଆହା !
ଯେଉଁଠାରେ ଦିନ ସାରା ଖଟି ଖଟି
ଆପଣାର ଘର୍ମ ଢ଼ାଳ
କଏ କାହିଁ ପ୍ରାଣଭରି କରଇ କଲ୍ୟାଣ,
ଅଥଚ ସେ ସବୁବେଳେ
ଶାନ୍ତ ଓ ବିନମ୍ରୀ

ସନ୍ତୁଷ୍ଟ ତା ମୂର୍ତ୍ତିପରି ବଣେ ତା'ର ପ୍ରାଣ !
ଯେଉଁଠାରେ ଶତ ରୂପେ ହୋଇ ଜାରଖାର
ଜୀବନର ଘାଏ ଜଳେ ସ୍ୱର୍ଣ୍ଣ ଶିଖା ଧରି
ସିଏ ପୁଣି ହତଭାଗ୍ୟ ମାଟି
ଆଜିତ ଜଗତ ତାରେ ଘୃଣା କରି
ପଥପ୍ରାନ୍ତେ ଦଳି !!!

ଏକ ସ୍ଥାନୁ ଝରୁଅଛି ହୃଦୟ ଅମୃତ
ଅନ୍ୟ ସ୍ଥାନୁ ହେଉଅଛି ବିଷ ଉଦ୍‌ଗୀରଣ,
ଅନ୍ଧ ଏ ଦୁନିଆ ହାୟ ବିଷର ସନ୍ଧାନେ
ଭୁଲିଅଛି ହୋଇ ସତେ କି ଉଚ୍ଚାଟ ମନ !

— ଚାରି —

ତାରେ କିଏ ଦେବ ନାହିଁ
ସୁଯୋଗ ସୁବିଧା ପୂର୍ଣ୍ଣ ଅଧିକାର ?
ବଞ୍ଚିବାକୁ ସମ୍ମାନ ସମ୍ଭ୍ରମ ଧରି
ଧରି ତାର ମଧୁର ସଂସାର ?
ତା' ଅନ୍ତର ହସିବନି ଦେଖି ଏଇ—
ଚପଳ ଚଞ୍ଚଳ ସ୍ୱଚ୍ଛ ଜହ୍ନରାତି
ଦେଖିବନି ପ୍ରାଣର ମଧୁର ସ୍ୱପ୍ନ
ଉଠିବନି ପୁଲକେ ତା' ଗାତ୍ର ?
ଗାଇବନି ଗୀତ ସିଏ
ମନର ମଉଜେ
ଏ ସୁନ୍ଦର ବସୁନ୍ଧରା ପରେ ?

ପିନ୍ଧିବନି ସୁନ୍ଦର ପୋଷାକ
ତୁମ ତୁଳେ ବୁଲିବନି ଥରେ ?
ହୃଦୟର ସୁଖ ଦୁଃଖ
କହିବନି ତୁମରେ କି
ଆପଣାର କରି ?
ସେ ଟିକକ ତୃଷ୍ଣା ତାହାର
ଯିବ ସେକି ତା'ଭିତରେ ମରି ?

ଏ ଆକାଶ ଏ ପୃଥିବୀ
ଜଳ ବନ ପାହାଡ଼ ପ୍ରାନ୍ତର
ତା' ପାଇଁ କି ଖୋଲିବେନି
ମଧୁର ଅନ୍ତର ?
ବିହଗର ମଧୁକଣ୍ଠ
କାନେ ତାର ଢାଳିବନି ସୁଧା ?
ରହିବ ଅତୃପ୍ତ ସତେ
ତା' ଦରିଦ୍ର ଜୀବନର
ଯେତେ ଯେତେ କ୍ଷୁଧା ?
ଏ ଧରଣୀ ଲଗିବନି ତାରେ
ସରଗରୁ ବଳି ମଧୁମୟ ?
ଗୋଟିଏ ନିମେଷ ପିଏ
କାଟିବନି ହୋଇ ଏଥି ନିଃଶଙ୍କ ନିର୍ଭୟ ?
ତା' ଓଠ କି ପଡ଼ିଥିବ ଫିକା
ଯୁଗ ଯୁଗ କାଳ କାଳ ଧରି ?
ଚିରଦିନ ରହିଥିବ ସେ କି

ଜଗତରେ ଖାଲି ମତ ମର ?
ଆନନ୍ଦର ଅମୃତର ବିଶାଳ ବସୁଧା
ଲାଗୁଥିବ ତା'ର ଖାଲି ମରୁଭୂମି ପରି ?
ଆଖି ଲୁହ ହାତ ପଟେ ପୋଛି
ଚିରଦିନ ରହିଥିବ ଚେଡ଼ି ?
ସୁନ୍ଦର ଜୀବନ ତାର
ଲାଗୁଥିବ ନିପୃତ ଦୁର୍ବହ
ଲାଞ୍ଛନାର ତାଡ଼ନାର ଅଗ୍ନିବର କଷାଘାତେ
ହେଉଥିବ ଆକୁଳ ଅଥୟ ?
କେ' ତା'ର ବୁଝିବ ନାହିଁ ?
ଦେବ ତୁମେ ମନସ୍ତେ ଆଡ଼େଇ ?
ଭୁଲିଥିବ ସେ କି ସବୁବେଳେ ˚
ସୀମାହୀନ ଆଘାତ ଓ ପ୍ରତିଘାତ ଦେଇ ?
ସିଏ କଣ ନଭିଯିବ ?
ଜଳିବନି କେବେ ହେଲେ ଥରେ ?
ସେ କି ଏତେ ତୁଚ୍ଛ ?
କିଛି ନୁହଁ ଏ ମହା ବିଶ୍ୱରେ ? ? ?

— ପାଞ୍ଚ —

ତୁମେ ଯା'ଙ୍କୁ ଅସଭ୍ୟ ବର୍ବର ମଳି ମୁଣ୍ଡିଆ କରି
ପାଦ ତଳେ ଦେଉଛ ଆଡ଼େଇ
ସେମାନଙ୍କ ପ୍ରତି ବିନ୍ଦୁ ଶୋଣିତର ଦାନ ନେଇ
ବଞ୍ଚନ କି ତୁମେ ଧବଳେ ?
ସେମାନଙ୍କୁ ପ୍ରତାଡ଼ଦେଲେ

କାହିଁ ତୁମ ଗଡ଼ ସ୍ଥିତି
କହ ଅଜ କହ ମତେ ଥରେ ! !

ତୁମେ ଆଜ୍ ସେମାନଙ୍କ ମେଳେ
ଗଢ଼ି ଅଛ କିଆଁ ଏ ପାଚେରି ?
ତାଙ୍କଠାରେ ନାହିଁ କବା ବଇଭବ ଶିରି ?
ସେମାନେ କାହିଁକି ଶ୍ରେଷ୍ଠ ?
ତୁମେ କମ୍ପା ବଡ଼ ?
କାହିଁକି ଏ ଆଭିଜାତ୍ୟ ଅଭିମାନ ରହିଚି ତୁମ୍ଭର !

ମୁହୂର୍ତ୍ତ ମୁହୂର୍ତ୍ତ ଧରି
ପୃଥିବୀ ଆଖିରେ ତୁମେ
ଫିଙ୍ଗାଉଚ ଧୂଳି
ତୁମ ଚହୁଁ ବଳ କେହି ନାହିଁ—
ବଜାଉଚ ଆପଣାର ଜୟର ଦୁନ୍ଦୁଭି
ଯୁଗ ଯୁଗ ଧରି !
ସେମାନେ ନଶ୍ୱର ଶାନ୍ତ ନିର୍ଦ୍ଦୋଷ ଜନତା
ସେମାନଙ୍କ ପରେ କରିବାକୁ ଅତ୍ୟାଚାର
ତୁମେ ଖାଲି ଖଟାଅ କ୍ଷମତା ! !

ବୁକୁ କାଟି ରକ୍ତ ଦେଇ
ପୃଥିବୀରେ କାମ ଯିଏ—
କରି ଚାଲେ ହୋଇ ନିସ୍ୱାର୍ଥପର,
ତା' ଉପରେ ଯେତେ ଯାହା

ଅତ୍ୟାଚାର କର,
ଦିନେ ସେ ଜାଗିବ ଧରା
ଶତ ଫଣି ବଳ !!!

—ଛଅ—

ଏଇତ ଦେଖୁଛ ଏବେ
ଏ ମାଟିର ଶତ ଶତ
ମୂଲିଆ ଓ ମଜୁରିଆ
ଯାଉଛନ୍ତି ବାଛୁବାକୁ ଧାନ
ଦିଶୁଛନ୍ତି ଜୀର୍ଣ୍ଣ ଶୀର୍ଣ୍ଣ
କଙ୍କାଳର ମାଳା ଅଛି
ହୋଇ ତାଙ୍କ ପ୍ରାଣ !
ଜମି ସବୁ ପଡ଼ିଅଛି
ପଡ଼ିଆ ପଙ୍କାଳ
ଏଇ ବର୍ଷ ବ[illegible]ନାଇଁ ହେଲା,
ଯାଉଛନ୍ତି ଦୂର ଗାଁ ।।
କରିବାକୁ କାମ
ଯୁବା ଯଉବନା
ଭେଣ୍ଡା ପିଲା !
ଖାଇ ତ ନାହାନ୍ତି କିଛି !
ଲାଗି ଯାଇ ଅଛି ପେଟ
ମୂଲ କାହୁଁ ଆଣିଲେ ଗଣ୍ଡିଏ
ଚାଉଳ କିଣିବେ ହେଲେ

କେତେ ଯେ ଅନାଥ ହୋଇ
ଧରଣୀରେ ରକ୍ତଚକ୍ଷୁ ଦିଏ !!

ଅଭାବ ! ଅଭାବ ଖାଲି !
ଅନନ୍ତ ଅଭାବ !
ହାତ ପାଦ ଚକ୍ଷୁ ନାସା
କପାଳ ଆବର,
କେମନ୍ତେ ଗଜୁରି କରେ,
ପ୍ରାଣର ସମସ୍ତ ଶୋଭା
ନିର୍ମମ ପିଶାଚ ସମ
ଦିଏ ଧ୍ୱଂସ କରି !!
ଜଣେ ନୁହେଁ, ନୁହେଁ ଦୁଇଜଣ
ହଜାର ହଜାର ଏ ଯେ—
ନିଆଶ୍ରିତ ଜନ
ଚାହିଁ ଦେଲେ ଏମାନଙ୍କୁ
ବାରେ କେ' କହିବ
ଫୁଟିବ ଏମାନଙ୍କଠାରୁ
ମଣିଷର ଦୁର୍ଲ୍ଲଭ ଜୀବନ ?

କଏ ବାସି ତୋରାଣୀରୁ
ଢୋକେ ପିଇ
ପାଉଥିବ କାମେ,
କା ଘରେ ନ ଥିବ କିଛି
ମନେ ପାଣି ପିଇ

ଗ୍ଲାଥିବ କାମ କରିବାକୁ
ଦୂର ଗ୍ରାମେ !
କଏ ଖାଇଥିବ ଜାଉ
ଲୁଣ ଛୁଏ ମାରିଁ ଥିବ
ସାଙ୍ଗକୁ ତାହାର;
କାହା ଝିଅ କାନ୍ଦୁଥିବ
ଉପାସେ କ ଭଳ ଯିବ !
ମାଆ କହୁଥିବ
ବେଗି ଆ ତୁ ବାହାର !
କୁଡ଼ିଆ ଖଣ୍ଡିଏ ଖଣ୍ଡିଏ—
ସବୁ ଛାଡ଼ି କଳ ଦେଇ
କେତେ ବଣ ବୁଦା ହୋଇ ପାରି
ଯାଉଚନ୍ତି କାମ ଦାମ
କରିବାର ଲାଗି
ବଦନ ମଣ୍ଡଳେ ଜାଗେ
ବେଦନା[redacted] !!

ଯହିଁ ଦେଲେ ଏମାନଙ୍କୁ
ଠିଆ ହୋଇ ପଥପ୍ରାନ୍ତେ,
ଝରିଯାଏ ମୋ ନୟନୁ
ଲୁହ ଝର ଝର !!
ପୃଥିବୀରେ କେତେ ଦୁଃଖେ·
କଏ କାହିଁ ରକ୍ତଚନ୍ତ
ମୋହର ଶୋଣିତ ଧାର

ଧନ୍ୟ ମୋ ଅନ୍ତର ! !
ଯୋଡ଼ାଇ ଦେବାକୁ କା'ର
କଳା ଖଣ୍ଡେ ନାହିଁ
ବୁଝିବାକୁ ପ୍ରାଣର ଦହନ
ନାହିଁ କେଉଁ ଆପଣାର ଜନ
ବସନ୍ତ ଆକାଶ ତଳେ
ଏଇ ରାଜ ପଥ ଧାରେ
ବୁଲିଚାଲି କେଉଁ ଦୂରଗାଁଏ
କରିବାକୁ ଅନ୍ନ ଅନ୍ୱେଷଣ !

ଧିକ୍ ଧିକ୍ ଶତ ଧିକ୍ !
ଯେଉଁମାନେ ଏମାନଙ୍କୁ ବୁଝିଁ
ନାକ ଟେକ ଅପଦାର୍ଥ ମନେ କରି
ପାଦ ତଳେ ଦଅନ୍ତି ଆଡ଼େଇ !
ହିତଳ ସଙ୍କୋଧ ରକ୍ତ
ଏସବୁର ଦେହ'ର ଭିତରେଁ
ହସି ହସି ଦିନ ମାନ କଅନ୍ତି ପୁହାଇ !
ଘନ ଘୋର ଅନ୍ଧକାରେ
ଅସଭ୍ୟ ବର୍ବର କରି ମଣିଷକୁ ରଖି,
ସୀମାହୀନ ଅଭାବ ଓ ଯାତନାରେ
ମଣିଷକୁ ଚିରକାଳ ସଡ଼ାଇ ସଡ଼ାଇ
ଯେ ଶାସନ ଚଳେ—
ମଣିଷର ଲୁହ ନିଶ୍ୱାସର ତାପେ
କେତେ ଦିନ ତିଷ୍ଠିବ ସେ ?

ଝଳି ଯିବ ଦିନେ ଅସମ୍ଭାଳେ !
ସେ ଶାସନ ଦଣ୍ଡ ଧରି
ଗର୍ବ ଗଉରବ—
ଅନୁଭବେ ଯେ ଶାସକ ଜନ
କି ବୀଭତ୍ସ ପୂତି ଗନ୍ଧମୟ
ତା ଅନ୍ତର ମନ ! ! !

ଶାସନର ଅର୍ଥ ନୁହେ
ପ୍ରଭୁତ୍ୱ, ହାକିମି
ଅବା ସୀମାହୀନ ଘୋର ଅତ୍ୟାଚାର !
ପ୍ରତି ଜୀବନର ପରମ କଲ୍ୟାଣ ଲାଗି
ମୁହୂର୍ତ୍ତି ମୁହୂର୍ତ୍ତି ଧରି, ବୁଣିଦିଏ ଯାହା
ଅମୃତର ଅସରନ୍ତି ଧାରା—
ସେ ଏକା ଶାସନ
ସେ ରାଇଜ ସରଗରୁ ବଳି
ସୁଖ ଶାନ୍ତି [redacted]ଣର
ପୁଣ୍ୟ ନ[redacted] ! !

—ସାତ—

ତୁମରି ସେ ଅଗ୍ନି ମନ୍ତ୍ର
ଶୋଣିତର ପ୍ରତିବିନ୍ଦୁ ତଳେ
ଜୀବନର ପାତ୍ର ନାଚିଁ ଜଳେ
ତୁମେ ପ୍ରବଞ୍ଚକ
ତୁମେ ଯେତେକ୍ଷେ ଏ ମାଟିର
ଜୀବନ୍ତ ନରକ !

ତୁମର ଭିତରେ ତୁମେ ନାହିଁ ।
ତୁମେ ଅଛ ଛଳନାର ବିଷାକ୍ତ ଗନ୍ଧରେ
ଏକ ଭୟଙ୍କର ସର୍ବସ୍ୱ ପ୍ରାପ୍ତି
ନିଜକୁ ଜାଣିନ ତମେ
ଜାଣିବାକୁ ଦେଇନାହିଁ ବାଟରେ ଅବକାଶ
କେମନ୍ତେ ଜାଣିବ ତୁମେ ?
ମଣିଷର ସକଳ ସମ୍ପଦ
ତୁମଠାରୁ ହୋଇଚି ନିକାଶ !

ଅଗଣନ ଏ ମଣିଷ ଜାତି !
ସବୁରିଙ୍କୁ ଘୃଣା
ସବୁରିଙ୍କୁ ଅବିଶ୍ୱାସ
ସବୁରିଙ୍କୁ କରୁଅଛ
ଜଘନ୍ୟ ସନ୍ଦେହ
ତୁମେ ଖାଲି ଛପି ଛପି
କରୁଚ ଆସିବା ଯିବା
କେମନ୍ତେ ଲଗୁନ ଭଲେ
ଭଗବାନ୍ତ
ତୁମ ମନ ଦେହ ?

ଏ ଅନନ୍ତ ପୃଥିବୀ ଉପରେ
ଜୀବନ ଜୀବନ ସହ
ଅନ୍ତର ମିଶାଇ
ଚାଲିବାକୁ
ଆପଣାର ଯାତ୍ରା ପଥେ

ଯେବେ କୁଣ୍ଠାବୋଧ କରେ
କ କଦର୍ଯ୍ୟ ଜଘନ୍ୟ ସ୍ୱପ୍ନାରେ
ସେ' ଯେ ଯାବ ସ୍ୱଳ ସ୍ୱଳେ—
କେମନ୍ତେ ଯାଉବ କହ ?
ଆସୁନ ମୋ
କଳ୍ପନାର ଛଳେ ! !

ସମାଜର ସ୍ତରେ ସ୍ତରେ
ରହୁଅଛ ତୁମେ ଚକାମାଡ଼ି
ତୁମର ନିର୍ମମ ହାତ
ସୃଜନ କରୁଛି କେତେ
ଶ୍ମଶାନର ଗାତ
ଏ ମାଟିର ଚତୁର୍ଦ୍ଦିଗେ
ସୀମା ତାର କାହିଁ ?
କେଉଁ' ପିଶାଚର
ନିର୍ଯାସରେ ଗଢ଼ା
ତୁମ ଦେହ ମନ ଜାଣିପାରେ ନାହିଁ ! !

କ୍ଷମତା ଓ ଧନ ଏଇତ ତୁମର ଅସ୍ତ୍ର !
ଯାହାର ବଳେ ବସ୍ତୁତଃ ତମେ
କରୁଥିବ ଚିର ଦିନ ଏଥି ରାଜପଣ !
ଏହାର ବଳରେ ତୁମେ
କଣସିବ ସବୁ ଅନାଗ୍ରହ
ଏ ଟିକକ ଥିଲେ ଯେତେହେଲେ
ପୃଥିବୀ ତୁମର ହାତେ

ଗୋଟେ ଖେଳଘର ।
ତୁମେ ଖାଲି ଲୋଡ଼
ଦୁନିଆର ଆଜି ଯେ ସମସ୍ତେ
ଡରି ମରି ରହିଥିବେ
ତୁମ ପାଦ ତଳେ ।
ତୁମେ ଖାଲି କରୁଥିବ
ନିରଙ୍କୁଶ ରାଜପଣ
ତାଙ୍କର ଉପରେ !

ଜାଣ ତୁମେ ଜାଣ ?
ମଣିଷ ଏ ପୃଥିବୀର ସମସ୍ତ କ୍ଷମତା !
ମଣିଷ ଏ ପୃଥିବୀର ଏକମାତ୍ର ଧନ !
ମଣିଷ ଏ ପୃଥିବୀର ଏକାନ୍ତ ଗୌରବ !
ମଣିଷରେ ଦୂରେ ଦୂରେ ବହୁଦୂରେ
ଫିଙ୍ଗିଦେଲେ ତମେ
ଏ ଜୀବନ କେଡ଼େ ନିଃସ୍ୱ କେଡ଼େ ପ୍ରାଣହୀନ ! !

ଯେଉଁ ଦେଶ
ଯେଉଁ ବ୍ୟକ୍ତି
ମଣିଷକୁ ଦେଇନାଇଁ
ସେନେହ ସମ୍ମାନ,
ବୁଝିନାଇଁ ବୁଝିନାଇଁ
ମଣିଷର ପ୍ରାଣ
ଏ ମାଟିର ପରମ କଲ୍ୟାଣ
ମଣିଷର ଦରଦରେ

କାନ୍ଦନାହିଁ ଲୁହଟିଏ ଢାଳି
ହୃଦୟ ସର୍ବସ୍ୱ ଦେଇ
ଆପଣାର ଶୋଣିତରେ ମଣିଷକୁ
ଆଣିନାହିଁ ପାଳି,
ସେଇ ବ୍ୟକ୍ତି ସେଇ ଦେଶ
ଆପେ ଆପେ
ଯାଇନାହିଁ ଅସ୍ତହୋଇ
ଜଗତଜନଙ୍କ ଆର ପାରେ
ଚିରଦିନ ପାଇଁ···?

—ଆଠ—

ନାହିଁ ସଖା ! ନାହିଁ ବନ୍ଧୁ !
କରନାହିଁ ମତେ ଅନୁରୋଧ
ଯିବାପାଇଁ ସେଇ ଥାନେ ମୋର—
ହୁଏନାହିଁ ଟିକେକ ହୃଦ୍‌-ବୋଧ ।
ସେଠିକି ଯିବନି ମୂର୍ତ୍ତି
ମାତ୍ର ବନି ଲଭେ ସେଇଥାନ
ସେ ଭୂଇଁର ମୋହନ ଉତ୍ସବେ
ଫୁଟେନାହିଁ ମୋ ଅନ୍ତର-ଗାନ ।
ଜାଗେ ନାହିଁ ମରମେ ମୋହର
ଅମୃତର ଏକଇ ଉଚ୍ଛ୍ୱାସ
ଯେତେଦେଲେ ଅମିତ ଗୌରବ
ଅଧରେ ମୋ ଜାଗେ ନାହିଁ ହାସ ।

କ୍ଷମତା ଓ ସମ୍ପଦର ଜୟ ଜୟକାରେ
ଯେଉଁ ମାଟି ନିତ୍ୟ ମୁଖରିତ,
ବେଶ ବାସ ବିଭବ ଗୌରବ
ହୁଏ ଯହିଁ ଖାଲି ସମ୍ମାନିତ,
ଦୀନ ଦୁଃସ୍ଥ ଦାରିଦ୍ର୍ୟରେ ଯହିଁ
ଯେଉଁ ଠାରେ କା' ଅନ୍ତର
ଯାଏ ନାହିଁ ଟିକେହେଲେ ଦ୍ରବି,
ଦୁଃଖୀର ଅଭାବ ଦେଖି,
ନେତ୍ରୁ ଯହିଁ,
ଏକ ବିନ୍ଦୁ ଲୁଣି ଲୁହ ଝରେ ନାହିଁ ସ୍ରବି,
ହଜାର ହଜାର ଦୀନ ଦୁଃଖୀ
ନିରାଶ୍ରିତ-ଜୀବନର
ଲୁହବୋଳା ମର୍ମନ୍ତୁଦ—
ଦୃଶ୍ୟ ଯହିଁ ଯହିଁ
ଗୌରବର ଗଜଦନ୍ତ ଗାଦିପରେ ରହିଁ
ଏକଇ ନିମେଷ ବସି ପାରିବି ମୁଁ ନାହିଁ ! !

ମୋହଠି ରହିଛି ଯେଉଁ ରକ୍ତ ମାଂସ ହାଡ଼,
ମୋହଠି ରହିଛି ଭରି ଯେ ଅନ୍ତର ମନ,
ସେଇ ଉପାଦାନ ନେଇ
ଗଢ଼ାନିକି ? ଲକ୍ଷ ଲକ୍ଷ ଲାଞ୍ଛିତ ଜୀବନ !
ମୁଁ ଆଜ ଲୋଡ଼ୁଛି ଯହ ଅନ୍ନ ଔଷଧ
ସେମାନେ କି ଲୋଡ଼ୁଥିବେ ନାହିଁ ?
ସହସ୍ର ସୁନେଲି ସ୍ୱପ୍ନ

ସେଇ ନିଃସ୍ୱ ବୁଭୁକ୍ଷୁଙ୍କ ଲାଗି
ଯାହାଥିବ ମୋ ରବେ ଉଚ୍ଛ୍ୱାସ ! !
ବିଶ୍ୱର ଏ ବସୁଧାର ଅଭିଶପ୍ତ ପ୍ରାଣୀ ପରି,
କେତେ କାଳ ବଞ୍ଚି ରହି,
ଦୁଃଖ ରୋଗ ଅଭାବର ଅନନ୍ତ ତିମିରେ,
ବୁଡ଼ିଯିବେ ଦିନେ କେଉଁ ମହାକାଳମାରେ !
ଧରଣୀରେ ଆସିବାର
ଜୀବନକୁ ଜାଣିବାର,
ବିଷଭରା ବାରେ ଉପଭୋଗ
ମିଳେ ନାହିଁ ଦଣ୍ଡେ ପାଇଁ ଯାହାରେ ସୁଯୋଗ ।
ସେ ମୁମୂର୍ଷୁ, ଚିର ଜୀର୍ଣ୍ଣ, ଚିର ନିଃସ୍ୱ, ଚିର—
ହାହାମୟ—ଜନତାର ଲାଗି,
ବିଶ୍ୱ ସହାନୁଭୂତି ବିଷଭରି ଉଠେନାହିଁ ଜାଗି—
ଯେଉଁ ଧରଣୀର,
ସେଠି ଅଛି ଯେ ମାନବିକତା,
ସେ କି ଯୁଗ ଯୁଗ ଧରି ହୋଇନାହିଁ ନତଶିର ?
ମଧ୍ୟାହ୍ନର ଛାୟା ସମ
ଦୃଷ୍ଟି ରେଖା ତାହିଁ ସଙ୍ଗେ କେଡ଼େ ସଙ୍କୁଚିତ !
ଯିବନ ନିମିଷେ ତହିଁ,
ଯିବାପାଇଁ ମୋ ଅନ୍ତର ସେଇଥାନେ ସତତ
କୁଣ୍ଠିତ .

ଯିବ ମୁହିଁ ମାଡ଼ି ସେଇ ଅପନ୍ତରା ସେ ଅରମା ବାଟ
ପୃଥ୍ୱୀର ଶତ ଦୁଃଖ

ଅସ୍ତବର ନବାରୁଣ ବର୍ତ୍ତିକା
କଲେ ଯହିଁ ଶରଦ୍ଧନ ଶରକାଳ ସକରୁଣ ନାଟ,
କାନେ ମୋର ବାଜଯାଏ ବୁଭୁକ୍ଷୁର ଦୈନ୍ୟ-
ବୋଲା ବାଣୀ
ଛରଲାଇ ଦଏ ମୋର ହୃଦୟର ପ୍ରୀତିରେଣୁ କଣା
ନବଶ୍ରୀସ୍ତ ନୟନର ଛତ୍ର ଅଶ୍ରୁ
ମରମେ ମରମେ ମୋର କ ଆଘାତ ହାଣି !
ଡାକେ ମତେ ପୃଥିବୀର
ସେଇ ଅଚେନ୍ତସ
ସେ ଅରୂମା ଭୂଇଁ
କାଳ କାଳ ଧରି ଯିଏ
ମଣିଷ ଅନ୍ତର ସୁଧା
ଲଭେ ନାଇଁ ଛୁଇଁ !!

—ନଅ—

ଯିବନାଇଁ ?
ଯାହା ଲାଗି ଏତେ ଏତେ
ସାଧନା ଧିଆନ
ଯାହା ଲାଗି ଅକୁଣ୍ଠିତେ
ଦେବା ଲାଗି ପ୍ରାଣ
ରହିଁ ମୁଁ ବସିଛି ନିତି
ଯାହା ପାଇଁ ମମ
ବୁକୁ ତଳେ ଜାଗି ଉଠେ
ସିଂହର ବନ୍ଦନ ।

ସମସ୍ତ ବନ୍ଧନ ବାଧା
ଏଡ଼ି ଦେଇ ବାରେ
ଯିବାକୁ ମୁଁ ଉତ୍କଣ୍ଠିତ
କେମନ୍ତେ ମୁଁ ତାରେ
ପାଶୋରି ପାରିବି କହ ?
ଯିବି ମୁହିଁ ଝଡ଼ି ?
କଳକାଟି ବୃନ୍ତ ଚ୍ୟୁତ
ଝଡ଼ି ଗଲା ପରି ?
ପ୍ରାଣହୀନ ମହାମରୁ
ବାଲିସ୍ତୂପ ପରି
ମୁଁ କି ଖାଲି ପଡ଼ିଥିବି
ଯୁଗ ଯୁଗ ଧରି ?

ସୀମାହୀନ ପାରାବାରେ
ଉଚ୍ଛୃଙ୍ଖଳ ଉର୍ମିମାଳା
ଝଡ଼ର ଉତ୍ସଙ୍ଗେ
ଊର୍ଦ୍ଧ୍ୱେ ଊର୍ଦ୍ଧ୍ୱେ
ଉଠିବାର ପରି
ଅଣଗୃଣ ପବନର
ମହା ଆବର୍ତ୍ତନେ
ମେଘ ଆପେ ସେଉଁଭଳି
ଦୁଷ୍ଟ ଦୁଷ୍ଟ ବଷ୍ଟ ଦୁଷ୍ଟ
ପ୍ରଳୟର ମହାମୂର୍ତ୍ତି ଧରି
ଆଗ୍ନେୟ ପର୍ବତ ଚୂଡ଼େ

ଅଗ୍ନିଶିଖା
ଯେପର୍କ୍ତ ଉଠେ ଜଳ
ଚତୁର୍ଦ୍ଦିଗେ
ମୁହୁର୍ମୁହୁ
ଜଗଇ କମ୍ପନ,
ସେପରି ଉଠିବ ମୁହିଁ
ଅଛୁ ମୋର ସୀମାହୀନ—
ଶକ୍ତି ପରାକ୍ରମ ! !

ଶତ ଓ ସହସ୍ରବାର
ମତେ କଏ ଲୁଚାଦେଲେ
ପୃଥିବୀ ଅତଳ ତଳେ
ନଭସିବ ନାହିଁ ! !
ଊର୍ଦ୍ଧ୍ୱେ ଊର୍ଦ୍ଧ୍ୱେ
ଆହୁରି ଅସୀମ ଊର୍ଦ୍ଧ୍ୱେ
ଉଠିବ ଉଠିବ ମୁହିଁ
ଢନ ଢନ ଧର ମୁଁ ଯେ
ରହିଅଛି ଲୁହିଁ ! !

ମୁଁ ଚାଲିବ ସେଇ-ପଥେ !
ଚିର ଢନ ଯେଉଁପଥ !
ଭୀଷଣ ଦୁର୍ଗମ ! !
ଯେଉଁଠି
ବିପଦ, ଭୟ,
ଦୁଃଖ ଓ ଦୁର୍ଦ୍ଦଶା

ବନ୍ୟ ହିଂସ୍ରଜନ୍ତୁ ପରି
କରଇ ଗର୍ଜ୍ଜନ ! !
ଯେଉଁଠି ଚାଲିବା ପାଇଁ
ଥରିଯାଏ ଧରଣୀର ହୃତ୍ପା !
ନଭିଯାଏ ବୁକୁ ତଳୁ
ଦମ୍ଭ ଆଉ ସାହସର ନଆଁ ;
ଯେଉଁଠି କେ ଗୃଟଲନାଇଁ
ଚାଲିପାରେ ନାଇଁ
ପାଦ ଚପି ଚପି ଚାଲେ
ଫେରିଆସେ
ଖଣ୍ଡେଦୂର ଯାଇ,
ଯେଉଁଠି ରହିଲେ କଏ,
ରହିଥାଏ ଚିରଦିନ
ମଡ଼ା ଓ ମୁର୍ଦ୍ଦାର ପରି
ଜୀବନ ସର୍ବସ୍ୱ
ବଳି ଦେଇ
କାହା ପାଦତଳେ,
ଝିକିଏ ସେ
ହେଲେ ହଲଚଲ,
ପ୍ରାଣର ସ୍ଫୁର ହେଲେ
ତା' ଭିତରେ
ଲବ ମାତରକେ,
ବାଜଇ ଅଙ୍କୁଶ ତା'ଠି
ପାରେନ ପାରେନ ଉଠି

ଫଡ଼ ଉଡ଼େ
ଫାଟି ଭୁଣ୍ଡ ଚପି କଲବଟଲ !

ସେ ଦୁର୍ଗମ ପଥେ ପଥେ
ଗ୍ଭଲବ ଗ୍ଭଲବ ମୁହିଁ
ହେବ ପଛେ ମୁଁ କ୍ଷତ ବକ୍ଷତ
ରକ୍ତ ପଛେ
ଧାର ଧାର ହୋଇ
ବହିଯିବ
ପ୍ରତି ଅଙ୍ଗୁ ମମ
ଦେବନାହିଁ ପଛଘୁଞ୍ଚା
ଯିବନାହିଁ ଲହିଁ
ମୋ ଶୋଣିତ ପ୍ରତିବନ୍ଦୁ
ଶୀତଳ ଶିଥିଳ ନୁହେଁ
ତା' ଭିତରେ
ଅଗ୍ନି ଜଳେ
ଦପ ଦପ ହୋଇ !!

କେ ଗ୍ଭହେରେ
କା' ଦୁଆରେ
ତର ଦନ
ହେବାକୁ ଗୋଲମ ?
ଯାଉଣୁ ଆସୁଣୁ ନତ
କରବାକୁ ପ୍ରାଣହାନ—
ସହସ୍ର ସଲମ !

ହଜୁର ହଜୁର କହି
ପଛେ ପଛେ
ଚିରଦିନ ଗୋଡ଼ାଇବା ପାଇଁ
ନିଜର ସମସ୍ତଙ୍କ
ମାରି ହାଣି
ନିତ ଟିକ ଟିକ କରିଦେଇ !

ଜୀବନ-ମୋହର କରେ
ଏତେ ତୁଚ୍ଛ ଏତେ ହେୟ
ତୁମେ ମନେକର ?
ଅନ୍ୟର ଅଶ୍ରୁସ୍ନିଗ୍ଧ ବିନ୍ଦୁ
ମୋ ପକ୍ଷେ ଗିଳିବା କଣ
ଏତେ କଷ୍ଟକର ?
ବଳଥାଇ ବୀର୍ଯ୍ୟଥାଇ
ମୂର୍ଦ୍ଧି କଂପା
ହେବରେ ଗୋଲମ !
ଅନ୍ୟ ପାଦ ଚାଟି ଚାଟି
ପାଇବ ପାଇବ କେବେ
ଅମୃତ ସନ୍ଧାନ ?
ମୁହୂର୍ତ୍ତି ମୁହୂର୍ତ୍ତି ଧରି
ନିଜକୁ ମୂର୍ଦ୍ଧିରେ
ମାରି ମାରି ଖାଲି ମାରି ମାରି
କି ମଧୁସଂପଦ ଶିଖି
ପାଇବ କହତ ଏଠି ବାଂଚିଗଲା !

ମୋହଠି ଉଦ୍ଭଟ ଯେଉଁ
ଆଲୋକ ବର୍ତ୍ତିକା
ଜାଳେଁ ତାକୁ ଜାଳେଁ
ତାହାରେ ଦଗ୍ଧ କପାଁ
ରକ୍ତର ମୁଁ ନବଜ ଅଙ୍ଗାରେ
ମୁକ୍ତି ତ ଜୀବନ
ମୋହର ଭିତରେ ପ୍ରାପ୍ତ
ସୀମାହୀନ
ସହସ୍ର ତପନ
ଠିଆହେବ
ଅଣ୍ଡାଭିତ୍
ମୃତ ଓ ମୁମୂର୍ଷୁ ପର
ରକ୍ତବନ ରକ୍ତବନ୍ତ ତଳେ
ଗୋଲାମିର ଘୃଣ୍ୟଷ୍ଟିରେ
ପଦାଘାତ କରି
ଗୃଲୁ ମୋର ଜୀବନ ଦସ୍ତୁର୍
ବିଜୟ ସମ୍ଭାରେ !
ଯେଉଁଠି ଟିକିଏ ଅଛି
ସତ୍ତ୍ୱ.ଜୀବନର
କ୍ଷୁଦ୍ର ନୁହେଁ
ତୁଚ୍ଛ ନୁହେଁ ତାହା
ମୋହଠ ଜୀବନ ଅଛି
ପାରୁଛ ମୁଁ ଜାଣି ତାହା
ଅନ୍ତରେ ଅନ୍ତରେ ! !

ଦେଖିବ ଦେଖିବ ମୁହିଁ,
କାହା ଲେଲିହାନ ଜିହ୍ୱା
ଘରପୋଡ଼ ଅଗ୍ନିପରି
ମେଲାଇ ସହସ୍ର ଶିଖା
ନେଉଛି ଏ ଧରଣୀରେ ଶୃଷ୍ଟି,
ଚତୁର୍ଦ୍ଦିଗେ ପଡ଼ୁଅଛି
ପାଉଁଶ ଅଙ୍ଗାର
ଦରପୋଡ଼ା
ଶତ କୁଟାକାଠି !
ମୋର ଏଇ ରକ୍ତ ମାଂସ ହାଡ଼—
ଭିତରୁ ଛୁଟୁଛି ଆଜ
ଝଡ଼ର ହୁଂକାର ।
ପାଗଳ ମୁଁ
ଅଥପୁ ଚଞ୍ଚଳ !
ନୁହେ ଆଜ
ନଜେ ମୁଁ ନଜର !
ବରଂ ଏ ଧରଣୀର
ଯେତେ ନିଃସ୍ୱ,
ନିପତିତ,
ନିପ୍ପେଷିତ,
—ସବୁର ପ୍ରାଣର
ମୁହିଁ ଏକ
ସତ୍ୟ ବୋଲା
ଯାତ୍ରୀ ଚଳୁଆର

ପ୍ରଳୟର ମହା ଅଗ୍ନି ଭେଦ
ପୃଥିବୀରେ କରିବାକୁ
ପ୍ରାଣର ସଂଗ୍ରାମ
ଉଠିଛି ମୁଁ,
ଆସିଛି ମୁଁ,
ଆସିନାହିଁ
ଦାସତ୍ୱ ଶୃଙ୍ଖଳେ କାହିଁ
ବନ୍ଧା ରହି,
କରିବାକୁ
ଅନୁଗ୍ରହ ଭିକ୍ଷାକାର
ପଥପ୍ରାନ୍ତେ
ନଗ୍ନ କୁକ୍କୁର ପରି
ଲାଙ୍ଗୁଳ ହଲାଇ ! ! !

—ଦଶ—

ଧରଣୀରେ ଲଭେ ମୁହିଁ
ସୀମାହୀନ ସୁଖ ଭୋଗ ତଳେ ।
ଅଭାବର କଷାଘାତ
ନ ମାରଣ୍ଟି ମୋତେ ହେଲେ ଥରେ,
ହେମ ହର୍ମ୍ୟ କୋଳେ ଥାଏ
ଐଶ୍ୱର୍ଯ୍ୟର ମଧୁପୂର୍ଣ୍ଣ ଲଭି !
ଗୋଲାପ ଶଯ୍ୟାରେ ଢଳି
ଦେଖୁଥାଏ ଶତ ସ୍ୱର୍ଣ୍ଣ ଛବି
ଦୁଃଖ ଦାରିଦ୍ର୍ୟର ସେ ଯେ—

ମର୍ମନ୍ତୁଦ ଶତ ନିଷ୍ପେଷଣ
ନ ଭୋଗି ଜୀବନେ ଲବେ
ବିତିଯାଉ ମୋର ପ୍ରତିକ୍ଷଣ
ଏସବୁ ଭିତରେ କିନ୍ତୁ
ଯେବେ ନାହିଁ ମୋର ସ୍ୱାଧୀନତା
କେମନ୍ତେ କହିବ ମୋର ଜୀବନରେ
ଅଛି ସ୍ୱାର୍ଥକତା ? !

ସବୁ ଥାଇ ଯେବେ ମୁହିଁ
ଦାସତ୍ୱର ନିବିଡ଼ ଶୃଙ୍ଖଳେ
ବନ୍ଧା ହୋଇ ପଡ଼ିଥିବି
ଯେତେ ଯାହା ଆଶା ବୁକୁ ତଳେ
—ଫୁଟାଇ ପାରିବି ନାହିଁ
ରହିଥିବି କା ଆଦେଶ ପ୍ରତି,
ଆକାଶର ମୁକ୍ତ ପକ୍ଷୀ ସମ
ପାରିବିନି କରି ଅଗ୍ରଗତି,
କୁସୁମର ଗନ୍ଧ ପରି
ଯିବି ନାହିଁ ଭସି ଦୂରଆଡ଼େ,
ଚତୁର୍ଦ୍ଦିଗେ ମୋର ଯେବେ
ରହିଥିବ ଶତ ବଜ୍ରବାଡ଼,
ପାଦେ ମାତ୍ର ଯିବାପାଇଁ
ଯେବେ ଲକ୍ଷ ପାଦ ଧରିହେବ,
ଧିକ୍ ଧିକ୍ ମୋ ଐଶ୍ୱର୍ଯ୍ୟ
କାହିଁ ତହିଁ ହେବ ଗୌରବ ?

ଦରିଦ୍ର କୁଟୀର ତଳେ
ବସିଥାଏ କୁଶ ଶଯ୍ୟା ପାରି,
ଦାରିଦ୍ର୍ୟର କଷାଘାତେ
ରହେ କେବେ ହୋଇ ଅନାହାରୀ,
ନ ପଚ୍ଛୁରୁ କେହ୍ନି ମୋରେ
ନଥାଉ ମୋ ବେଶର ଆଡ଼ମ୍ବର
ପସୂର ଯୁଗଳକୁ ଯେବେ ଛିଣ୍ଡି ଅଛି
—ଦାସତ୍ୱ ଶୃଙ୍ଖଳ

ମୁକ୍ତ ନୀଳାମ୍ବର ପରି
ଯେବେ ମୁହିଁ
ପୂର୍ଣ୍ଣ ପ୍ରସାରିତ,
ପ୍ରାଣ ପ୍ରତି ତନ୍ତ୍ରୀ ତନ୍ତୁ ଫୁଟେ ଯେବେ
ସ୍ୱାଧୀନ ସଙ୍ଗୀତ—
ପବନ ମର୍ମରପରି ଆପେ ଆପେ,
ବନ ବନ ଧରି,
କିଏ କହ ଭାଗ୍ୟବାନ ପୃଥିବୀରେ
ମୋହ ତହୁଁ ବଳି ?

ମୁହିଁ ବହେ ଧରା ପୃଷ୍ଠେ
ବଞ୍ଚିବଇଁ ସେ ଜୀବନ ଧରି
ଦାଉ ଦାଉ ଜଳୁଥିବ ଯାହା
ଆକାଶର ଶତ ସୂର୍ଯ୍ୟପରି;

ଅଗ୍ନିଶିଖାସମ ଯେହ୍ନୁ
କାଳକାଳ ହେବ ଊର୍ଦ୍ଧ୍ୱଗାମୀ
ଅନନ୍ତ ପ୍ରେରଣା ବହ୍ନି
ବୁକୁ ତଳେ ତଳେ ଦବାଯାମୀ
— ଉଠିବନି ଥରିବନି
ରହିଥିବ ଶୁଦ୍ଧ ସତ୍ୟ ସମ
ପୃଥିବୀରେ ଅନନ୍ତ ବିକ୍ରମେ
କରୁଥିବ ନୃତ୍ୟ ବିଚରଣ !
ଏଭଳି ଜୀବନେ ଅଛି
ଶତ ଟଙ୍କ ଶତ ଗଉରବ
ଯେଉଁଠାରେ ସ୍ୱାଧୀନତା
ସେଠି ଏଇ ଜୀବନ ସମ୍ଭବ !!

ମୋତେ ଯଦି ଧରଣୀରେ
କେ ପଚାରେ କସ ତୁମ୍ଭେ ଗୃହ ?
ସବୁ ଯାଉ, ଥାଉ ମୋର ସ୍ୱାଧୀନତା
ଏଇ ଅଭିପ୍ରାୟ—
ଜଳଦ ଗମ୍ଭୀର ସ୍ୱରେ
କହିବଇଁ ବାରବାର କରି,
ସ୍ୱାଧୀନତାଠାରୁ ବଳି
ପୃଥିବୀରେ ନାହିଁ ଅବତରି,
ବିରାଟ ସମ୍ପଦ କିଛି ମଣିଷର ।
ସ୍ୱାଧୀନତା ଧରି

ମଣିଷ ସୁନାର ସ୍ୱର୍ଗ
ପୃଥିବୀରେ ଯାଏନକ ଗଢ଼ି ?
ନିଜକୁ ଓ ଅପରକୁ
ଗୌରବେ ଫୁଟାଇବାର
ପାଏନକ ପୂର୍ଣ୍ଣ ଅବକାଶ
ଦାସତ୍ୱ ଭିତରେ କାହିଁ
ଜୀବନର ମୋହନ ବିକାଶ ?

—ଏଗାର—

ବର୍ଷ ଭରି ଭଲପାଏ ମୁହିଁ
ବସନ୍ତ ସୁନ୍ଦର ଏଇ
ଧରଣୀରେ ମୋର !
ମରିବାକୁ ତାରି ଲାଗି
ତାଳମୋର ଧମନୀର
ପ୍ରତି ରକ୍ତବିନ୍ଦୁ,
ଅକୁଣ୍ଠିତେ,
ଅଜାତରେ ।
ଜୀବନର ସମସ୍ତ ମୁହୂର୍ତ୍ତ ଧରି
ତହିଁରେ ମୋ ଜୀବନର
ଅନନ୍ତ ଅମୃତ ଶୋଭା
ଉଠିବ ଫଟରି !

ଯେ ମାଟି ଉପରେ ଖାଲି
ହାଡ଼ ମାଳମାଳ !

ଯେ ମାଟି ଉପରେ ଖାଲି
କରୁଣ ଚିତ୍କାର !
ଯେ ମାଟି ଉପରେ ଖାଲି
ଦୈନ୍ୟ ଅନାହାର !
ରୋଗ ଦୁଃଖ ଅଭାବରେ
ନିସ୍ପୃତ ସନ୍ତୁଳ ହୋଇ
ଯେଉଁଠି ଜୀବନ ହୁଏ
ନିତ୍ୟ କଲବଲ
ଚାହିଁ ଦେଲେ ଚତୁର୍ଦ୍ଦିଗେ
ଦିଗ୍‌ବଳୟ ବ୍ୟାପୀ
ଶର ଅବସାଦ ଗ୍ଲାନି
ଘେରି ଅଛି
ଯହିଁ ନିରନ୍ତର
ସେ ମାଟିରେ
ଆଣିବାକୁ
ଜୀବନର ଛଇ
ମଟେ ଦିନ ?
ବଞ୍ଚିବି ମୁଁ
ଘେନ କିବା
ଆନନ୍ଦ ସମ୍ଭାର ?

ମୋ ଆନନ୍ଦ,
ମୋ ଜୀବନ,

ମୋହର ସହସ୍ର ସ୍ୱପ୍ନ,
ସବୁ ଆଶା ସବୁ ଅଭିଳାଷ
ଏଇ ମାଟି ଏଇ ଦେଶ
ଏଇ ମୋର ବିରାଟ ଜନତା
ଏ ସବୁରେ
ନର୍ମମ ପିଶାଚ ପରି
ପଦଚଳେ ଦଳି
କେମନ୍ତେ ବୃଳିବ କହ
କେଉଁଆଡ଼େ
ଏ ସମ୍ପଦ ଧରି ?

ଜୀବନ କି ଫୁଟିଚ ?
ଯେବେ ଏ ମଣିଷ
ମଣିଷକୁ ଚିରିଦନ
କରେ ନାରଖାର
ସେ କି ଆନନ୍ଦ ?
ମଣିଷ ମଣିଷ ନେବ
ବୁହାଇଲେ
ଉଷ୍ଣ ଅଶ୍ରୁଧାର ।
ସେଇ କଣ ଗଉରବ ?
ପାଦଚଳେ ଦଳି—
ମଣିଷରେ
କରିବାହିଁ
ଆପେ ଅଗ୍ରଗତି ।

ସେଇ କଣ ତୃପ୍ତି ?
ମନ୍ତ୍ରୀଙ୍କର ମଣ୍ଡାପରେ ବସି
ବୋଲାଇବା
ଆପେ ଛତ୍ରପତି ।
ସେଇ କି କ୍ଷମତା ସତେ ?
ଖାଲି ସ୍ୱାର୍ଥ କରି ନିତ୍ୟ
ମଣିଷକୁ ଦୂରେ ରଖିବାର
ସେ କି ଲକ୍ଷ୍ୟ ?
ଆପେ ବଡ଼ ହୋଇ
ଖେଳାଇବା ଚତୁର୍ଦ୍ଦିଗେ
ହାଣ୍ଡି ମାଳ ମାଳ !
ସେଇ କି ହୃଦୟ ?
କାରବାର ଯା'ର
ମଣିଷକୁ ଚିରଦିନ
ଦେବାହିଁ ଯନ୍ତ୍ରଣା
ସେଇ କଣ ଆନନ୍ଦର ବସୁନ୍ଧରା ?
ମଣିଷ ମଣିଷ ମେଳେ
ଯେଉଁଠାରେ ଭେଦ ଦ୍ୱନ୍ଦ୍ୱ
ଲାଗେ ଅକଳଣା ?

—ବାର—

ମୁହିଁ ଦେଖେ ସେଇଠାରେ
ଥାଏ ସ୍ୱାଧୀନତା,
ଯେଉଁଠାରେ

ମଣିଷ ମଣିଷ ମେଳେ
ଫୁଟେ ନାହିଁ
ହିଂସା ବର୍ବରତା !
ଯେଉଁଠାରେ ପୃଥିବୀର ସମସ୍ତ ବିବେକ—
ଦେଖୁଥିବ, ପୃଥିବୀରେ କେହିନାହିଁ
ଜଣେ ହୋଇ ନିଃସ୍ୱ ବା ନିରେଖି ।
ଯେଉଁଠାରେ
ପୃଥିବୀର କୋଟି କୋଟି
ଅନ୍ତର ଭିତରେ
ସତ୍ୟ ଅଜ୍ଞ ନ୍ୟାୟର ତରଙ୍ଗ
ନିର୍ଭୀକ ସଂଗୀତ ପରି
ଅବିରଳ ତଳେ !
ସ୍ୱାଧୀନ ମୁଁ ବୋଲି ଯେବେ
ଅନୁଭବେ ଗର୍ବ ଗଉରବ
ତାର କିବା ଅର୍ଥ ଅଛି ?
ଚତୁର୍ଦ୍ଦିଗେ ମୋର ଯେବେ
ଫୁଟେ ଆର୍ତ୍ତରବ !
ନିରନ୍ନ ଭିକ୍ଷୁକ ଯାଏ
ପଥ ପାର୍ଶ୍ୱେ
ଭିକ୍ଷା ଝୁଲି ଧରି
ଇନାହିଁ
ଝୁରିଦିନ ହେଲି
ଅଶ୍ରୁ ତାର
ନେତ୍ରୁ ଉଠେ ଝରି !

ତା'ର ଉଷ୍ଣ ଅଶ୍ରୁ ଯେବେ
ପରଶି ପାରେନା ମୋର
ସ୍ୱାଧୀନ ଅନ୍ତର
ତା ପାଇଁ ଦ୍ରୁଏନା ଲବେ—
ଯାଣ୍ଟିଯେବେ
ମୋର ବକ୍ଷସ୍ଥଳ
କାହିଁ ମୋର ଗଉରବ ?
ମୋର ଜପ୍ନ ଉଣ୍ଡିମର
ପ୍ରତି ଶବ୍ଦ ତଳେ
ଶତ ଶତ ଲାଞ୍ଛିତ—
ପତିତ ନଃସ୍ୱ ହା'ହା' ବାଣୀ
ଭାସିଆସେ
ଯେବେ ଅବରଲେ ।
ସ୍ୱାଧୀନ ଜୀବନ ଲଭ
ମୁହିଁ ଯେବେ ପୃଥିବୀର—
ଗୋଟିଏ ପ୍ରାଣକୁ ଦେଖେ
ଅବମାନନାର ନେଝ ଡାଳ,
କେମନ୍ତେ କହିବ ନାଇଁ
ସ୍ୱଷାଚ୍ଛ ମୁଁ ଯାଇଅଛୁ ହୋଇ ?
ମୋ ସ୍ୱାଧୀନ ଜୀବନରେ
ଲାଗିଅଛୁ ଘନ କୃଷ୍ଣ କାଳ ! !

ସ୍ୱାଧୀନ ମୁଁ
ମୁକ୍ତ ମୁଁ

ନିଃଶଙ୍କ ମୁଁ
ବିଶ୍ୱର ସମସ୍ତ ଅନ୍ତର
କରିବି ମୁଁ ଜୀବନର—
ପ୍ରିୟ ନିରନ୍ତର !
ମୋ ଭିତରେ ଅଛି ଯେଉଁ ଅମୃତ ସଞ୍ଚିତ
କାହାରିକୁ କରିବି ନ ଲବେ ମୁଁ ବଞ୍ଚିତ !
ପଥେ ମୋର
ଅଛି କିବା ବାଧା ବା ଅର୍ଗଳ
ଛଟିମାର ମୁକ୍ତ ସ୍ରୋତ ପରି
ବନ୍ଧ ଯିବ ଦିଗ ଦିଗନ୍ତର
ପାଶୋରିବି ସମସ୍ତ ବିଭେଦ
ସବୁଜ ସମ୍ପଦେ ଧରା କରିବି ସୁନ୍ଦର !
ସକଳର ବିକାଶ ଭିତରେ
ଲଭିବି ମୁହିଁ ବିକାଶ ମୋହର
ସକଳର ସୁଖ ଦୁଃଖ
ଆନନ୍ଦ କଲ୍ୟାଣ ମେଳେ
ମୋ ଅନ୍ତର ବେଣୁ ତାନ !
ଉଠିବ ସଞ୍ଚରି ।

—ଚେତିର—

ନିଃସ୍ୱ ନିପଡିତ ହେ ମୋର ଜନତା !
ବନ୍ଧନ ବନ୍ଧନ ତୁମେ
କରିଅଛ ବଞ୍ଚିବାକୁ ଚେଷ୍ଟା ବହୁବାର,
ପ୍ରାଣ ଭରି ହସିବାକୁ

କହିଚ ସାଧନା ତୁମେ
କେତେ ଆଶା ବାନ୍ଧି ଅଛ
ଥରେ ଥରେ କହି
ମନ ମତାଣିଆ ଗୀତ
ଗାଇବାକୁ ଥରେ ଏଇ ଧରଣୀ ଉପରେ,
ଜୀବନର ପ୍ରତି ମୁହୂର୍ତ୍ତକୁ
କରିବାକୁ ମଧୁମୟ
ପରିଶ୍ରମ କରିଚ ବହୁତ,
ପାରିନ ପାରିନ ତୁମେ ପାରିନ ପାରିନ ! !
ତୁମର ଯେ ସମସ୍ତ ସାଧନା
ଆସିଅଛି ଫେରି
ଉଡ଼ିବାକୁ ବାଧ୍ୟ ହୋଇଅଛ
ସେ କଜଳ କଳା ତୁମ ଗହ୍ୱର ଭିତରେ !

ଏ ନୀଳ ଆକାଶ
ତୁମକୁ କହିଚି
ବହୁବାର ଉପହାସ
ଏଇ ବିରାଟ ପୃଥିବୀ
ପରିତ୍ୟାଗ କରିଚି ତୁମରେ !
ସମସ୍ତର ଉପହାସ
ଅବହେଳା, ଅବଜ୍ଞା ଓ ଅନାଦର
ତୁମେ ଅଙ୍ଗେ ନଭେଇଚ,
ଅବଶେଷ ଗତି ଧରି
ଖୁଲିଚ ସମସ୍ତ ସୁଅ

କାଟି ସେଇ ସୂଅ
ଖୋଲିବାକୁ କେତେ ଚେଷ୍ଟା
କରିଅଛ ତୁମେ
କିନ୍ତୁ ପାରିନ ପାରିନ ତୁମେ
ପାରିନାହିଁ ଖୋଲି !

ପକ୍ଷ ତୁମର
ଯାଇଅଛି ଛିଣ୍ଡି !
ଅଗ୍ନି ତୁମ ଅନ୍ତରର
ପଡ଼ିଅଛି ମଳିନ ନିଷ୍ପ୍ରଭ,
ମରିଚ ସାଧନା,
ପ୍ରାଣର ସମସ୍ତ ସ୍ୱପ୍ନ
କେଉଁ ଅତଳ ସମୁଦ୍ର ତଳେ
ହୋଇଚି ବିଲୀନ
ଯାଇଚି ଯାଇଚି ସବୁ ଯାଇଚି ତୁମର
ରହିଚ ରହିଚ ତୁମେ କେବଳ ରହିଚ !
ବଞ୍ଚିନ ବଞ୍ଚିନ ତୁମେ
କଦାପି ବଞ୍ଚିନ ! !

ଶତ ଓ ସହସ୍ରବାର
ତୁମେ ତୁମ ଧମନୀର
ପ୍ରତି ବିନ୍ଦୁ ରକ୍ତ ତଳେ
କରୁଅଛ ଅନୁଭବ
ରହିଚ ରହିଚ ତୁମେ
କେବଳ ରହିଚ !

କେଉଁ ଦୂର ପାହାଡ଼ର
ବରଫ କଠିନ ଶିଳାଖଣ୍ଡ ପରି
ତୁମେ ରହିଅଛ ପଡ଼ି,
କେଉଁ ନିସ୍ତରଙ୍ଗ ସମୁଦ୍ରର
ଜଳରାଶି ପରି
ତୁମେ ଖାଲି ରହିଅଛ
ପ୍ରାଣ ଟିକ ଧରି !
କେଉଁ ଗିରି ଉପତ୍ୟକା
ଜନହୀନ ପ୍ରାଣହୀନ
ସାନ୍ଦ୍ର ଅରଣ୍ୟାନୀ ପରି
ତୁମେ ରହିଅଛ ସ୍ତବ୍ଧି !
କେଉଁ ମେରୁ ପ୍ରଦେଶର
ବରଫ ପ୍ରାନ୍ତର ପରି
ତୁମେ ପଡ଼ିଅଛ ଶୋଇ !

ତୁମେ କି ସୃଷ୍ଟିର ସତେ
ଏଇପରି ରହିବାକୁ
ଯୁଗ ଯୁଗ କାଳ କାଳ ଧରି ?
ସ୍ପନ୍ଦନ ସ୍ପନ୍ଦନ ତୁମେ
କଦାପି ସ୍ପନ୍ଦନ
ପ୍ରାଣ ଥାଇ
ଯିବାପାଇଁ ମରି !
ତୁମ ଜୀବନର
ପ୍ରାଣବନ୍ତ ଜୁଆରକୁ

ପଥର ମଡ଼ାଇ ବନ୍ଧ କରା ହୋଇଅଛି
ତୁମର ସ୍ୱପ୍ନକୁ
ଟିକ ଟିକ କରି କାଟି ଦିଆ ହୋଇଅଛି !
ତୁମ ପାଦର ଅଗ୍ରଗତିକୁ
ବନ୍ଦ କରା ହୋଇଅଛି —
ଗାରି କାଟି ବାରି ବାଡ଼ି କରି,
ତୁମକୁ କେବଳ ଖାଲି
ରଖା ଯାଇଅଛି
ଗୃହପାଳିତ ଏକ ଜନ୍ତୁ ପରି !
ତୁମେ ରକ୍ଷିତ ରହିତ
କେବଳ ଉକ୍ଷିତ
ବନ୍ଧନ ବନ୍ଧନ ତୁମେ
କଦାପି ବନ୍ଧନ !!!

ତରଙ୍ଗ ତୁମର ନାହିଁ !
ଅଛି ଅଛି ବନ୍ଧିତ ରକ୍ଷିତ
ଦୂର ଦିଗ୍‌ବଳୟର
କେଉଁ ଅଜ୍ଞାତ କୋଣରୁ
ତରଙ୍ଗ ଆସୁଛି କେତେ
ଭାଙ୍ଗି ପଡ଼ୁଅଛି ସବୁ,
ଶତ ଓ ସହସ୍ର ବାର
କେତେ ଯେ ତରଙ୍ଗ ଆସି
କେଉଁଆଡ଼େ ଯାଉଛି ଉଭାଇ
ତାର ସୀମା କାହିଁ ?

ଅର୍ବଲସ୍ନ ବ୍ୟାପୀ
ଅପ୍ରୂଳ ଅନନ୍ତ ବେଳା !
ନୀଳ ପାରାବାର
ତା' ଉପରେ !
ସୀମାହୀନ ତରଙ୍ଗର
ନିତ୍ୟ ଓ ନୂତନ ଲୀଳା—
ଏ ସବୁ କି ସୁନ୍ଦର !
ଓ କେତେ କମନୀୟ !!
ଏ ସବୁ ସମ୍ପଦ କାହିଁ ? ?
ସ୍ଥିତିରେ ଜୀବନ ନାହିଁ !!
ବ୍ୟାପ୍ତିରେ ବିକାଶ !!
ବ୍ୟାପ୍ତିରେ ଜୀବନ !!
ବ୍ୟାପ୍ତିରେ ଚରମ ପୂର୍ଣ୍ଣତା !!
ତୁମର ବ୍ୟାପ୍ତି ନାହିଁ
ବିକାଶ ନାହିଁ !
ତରଙ୍ଗର ନିତ୍ୟ ନୂତନ ଲୀଳା ନାହିଁ !
ତୁମେ ଉଦ୍ଧତ ଉଦ୍ଧତ ଟାଲ
ବଂଶନ ବଂଶନ ତୁମେ
କଦାପି ବନ୍ଧନ !

—ଜନତା—

ମୋର ଏଇ ଧରଣୀର
ହେ ଅସଂଖ୍ୟ ହେ ନିଃସ୍ୱ ଜନତା !

ତୁମରେ ମୁଁ ରହିଅଛି ସୃହିଁ
ସାଗର ଉଚ୍ଛ୍ୱାସ ପରି
ତୁମରି ଭିତରୁ
ପ୍ରାଣର ଅମୃତ ଶୋଭା
ଦେଖିବାର ପାଇଁ !

କି ବିରାଟ ଶକ୍ତିର
ସନାତନ ଉତ୍ସ ତୁମେ
ଦେଶେ ଦେଶେ ପ୍ରାନ୍ତର ପ୍ରାନ୍ତରେ
ବହି ଯିବ କଳଗାନ କରି
ଯାହା ରୁକ୍ଷ ଯାହା ପ୍ରାଣହୀନ
ସବୁଜ ସମ୍ପଦ ତହିଁ
ଫୁଟାଇବ କ୍ଷଣେ !
ତୁମେ ସବୁ ପାରିବ ପାରିବ କରି
ତୁମେ ମୂଢ଼ ଅପଦାର୍ଥ ଜଡ଼
ରୁଦ୍ଧ କେଉଁ କାରାର ଗହ୍ୱରେ
ତୁମରେ ରଖିଛି କିଏ
ବନ୍ଦୀ କରି ଯୁଗ ଯୁଗାନ୍ତର
ପଙ୍ଗୁ କରି କ୍ଳୀବ କରି
ତୁମରି ଏ ମହା ପ୍ରତିଭାରେ
କେ ନିର୍ମମ ସଏତାନ୍
ପୃଥିବୀରେ କରିଅଛି
କେତେ ନିଃସ୍ୱତର ?

ହେ ଜନତା ଅକ୍ଷୟ ସଂପଦ
ଏ ମାଟିର
କେମନେ ନିଷ୍କ୍ରିୟ ହୋଇ
ରହିଅଛ ଯୁଗ ଯୁଗାନ୍ତର !

ଜାତିର ଜୀବନୀ ଶକ୍ତି
ହେ ଜନତା !
ହେ ଆତ୍ମୀୟ
ଭରି ଦିଅ
କଲ୍ୟାଣ ଏ ଭୁବନେ ଭୁବନେ
ଉଠ ତୁମେ ଉଠ ଭାଙ୍ଗି
ସେ ଅଦୃଶ୍ୟ କାରା—
ପ୍ରସ୍ତ ଶିଳାଖଣ୍ଡ
ଅନ୍ତରର ଅସୀମ ବନ୍ଧନେ
ତୁମଠି ଯେ ଅଗ୍ନି ଅଛି
ନିଭିବାର ନୁହେଁ ତାହା
ତାକୁ କଏ
ମାଡ଼ି କୁହ ସ୍ଥଳିପିବ କହ !
ତୁମେ ଆଜ
ଶତ ଓ ସହସ୍ର ଟୁଣ ଉଠ ଜଳି
ତୁମେ ଆଜ ହୁଅ ଦୁର୍ବିସହ !

---

# କବିଙ୍କ ଲିଖିତ

## ଅନ୍ୟାନ୍ୟ କବିତା ଗ୍ରନ୍ଥ

| | | |
|---|---|---|
| ଆହୁତି | | ଟ୦୪୍ |
| ଅଗ୍ନିଶଙ୍ଖ | | ଟ୦୪୮/ |
| ମାଟିଦ୍ୱୀପ | (ଯନ୍ତ୍ରସ୍ଥ) | ଟ୧୯ |

ପ୍ରାପ୍ତିସ୍ଥାନ—

**କଟକ ଷ୍ଟୁଡେଣ୍ଟ୍ସ ଷ୍ଟୋର**

ବାଲୁବଜାର, କଟକ—୨

**ଜନ-ସାହିତ୍ୟ ପ୍ରକାଶନ**

ଗଙ୍ଗାମଧର, କଟକ—୧

ଛଦପଟ ମୁଦ୍ରଣ : ମନମୋହନ ପ୍ରେସ, କଟକ-୨